Approved by the Text book Committee, Madras.

# ଭକ୍ତି-ଗୀତିକା

ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. ଙ୍କ ସମ୍ପାଦିତ

# BHAKTI-GEETIKA

EDITED BY

RAMACHANDRA ACHARYA, B. A.

*(IN ACCORDANCE WITH THE GANJAM ELEMENTARY SCHOOLS' SYLLABUS)*

ତୃତୀୟ ସଂସ୍କରଣ

PRINTED & PUBLISHED
BY
**THE STUDENTS' STORE**
BOOK-SELLERS, PUBLISHERS,
STATIONERS, CABINET MAKERS
AT
*THE STORE PRESS*
FINE PRINTERS.
BERHAMPORE
(GANJAM)

1929.

ମୂଲ୍ୟ ଦଶ ପଇସା ମାତ୍ର । Price As. 2 ½.

# ନିମ୍ନ ପ୍ରାଥମିକ ସ୍କୁଲ ପାଇଁ ପୁସ୍ତକାବଳୀ

୧ ସାହିତ୍ୟାଙ୍କୁର ୧ମ ଭାଗ—'ଅକ୍ଷର ପରିଚୟ' ( ୧ମ ଶ୍ରେଣୀ ପାଇଁ ) ଟ ୦ ୵
୨ ,, ୨ୟ ,, ( ୨ୟ ,, ,, ) ଟ ୦ ୵
୩ ,, ୩ୟ ,, ( ୩ୟ ,, ,, ) ଟ ୦ ୵
୪ ସରଳ ସାହିତ୍ୟ ୧ମ ସୋପାନ ( ୪ର୍ଥ ,, ) ଟ ।
୫ ,, ୨ୟ ସୋପାନ ( ୫ମ ,, ) ଟ ୦ ।/
୬ ପ୍ରାଥମିକ ଅଙ୍କଶିକ୍ଷା ୧ମ ଭାଗ ( ୧ମ ,, ) ଟ ୦ ୳
୭ ,, ୨ୟ ,, ( ୨ୟ ,, ) ଟ ୦ ୳୵
୮ ,, ୩ୟ ,, ( ୩ୟ ) ଟ ୳
୯ ,, ୪ର୍ଥ ,, ( ୪ର୍ଥ ,, ) ଟ ୦ ୳
୧୦ ୫ମ ,, ( ୫ମ ,, ,, ) ଟ ୦ ୳୵
୧୧ ପୁରାଣକଥା ( ପ୍ରଥମ ଭାଗ ) ଜନୈକ ଶିକ୍ଷକ ଟ ୦ ୵
୧୨ ( ଦ୍ୱିତୀୟ ,, ) ଟ ୦ ୵୬
୧୩ ସହଜ ଗଣିତ ଶିକ୍ଷା (୪ର୍ଥ ଶ୍ରେଣୀ ପାଇଁ ) ଶ୍ରୀ ଦିବାକର ପଟ୍ଟନାୟକ ଟ ୦ ।୵
୧୪ ( ୫ମ ,, ,, ) ଟ ୦ ୳
୧୫ ଶିଶୁ ରାମାୟଣ ଶ୍ରୀ ଦାମୋଦର ମିଶ୍ର ଟ ୦ ।୵
୧୬ ଶିଶୁ ମହାଭାରତ ଶ୍ରୀ ଗୋଦାବରୀଶ ମହାପାତ୍ର ଟ ୳୵
୧୭ ଭକ୍ତି-ଗୀତିକା ( ଈଶ୍ୱରଭକ୍ତି, ପିତୃମାତୃ ଭକ୍ତି, ଗୁରୁଭକ୍ତି ଇତ୍ୟାଦି କବିତା ଓ ସଂଗୀତ—୧ମ ଶ୍ରେଣୀ ଠାରୁ ୫ମ ଶ୍ରେଣୀ ପାଇଁ ) ଟ ୦ ୵

ପିଲାଙ୍କହାଜର, ଶିକ୍ଷକହାଜର, ପ୍ରବେଶିକା, ବିଦ୍ୟୋନ୍ନତି ରେଜିଷ୍ଟର ଇତ୍ୟାଦି ମିଳେ ।

# ଭକ୍ତି-ଗୀତିକା

## ପ୍ରଥମ ସ୍ତବକ

(ପ୍ରଥମ ଶ୍ରେଣୀ ପାଇଁ)

## ଈଶ୍ୱର-ଭକ୍ତି

( କୃଷ୍ଣ ହେ ଦଅ କୃପା ପ୍ରଭୁ )

ପ୍ରଭୁ ହେ ତୁମ୍ଭ ଦୟା ଅପାର, ଜଗତ-ପିତା ହେ କରୁଣାକର । ୦ ।
ଦେଇଅଛ ପିତା ଦେଇଅଛ ମାତା,
ସରଳ ସୁନ୍ଦର ସଙ୍ଗୀ ମୋହର;
ଆକାଶର ତାରା ବରଷାର ଧାରା
ନଈ ପରବତ କେଡ଼େ ସୁନ୍ଦର;
ସୁନ୍ଦର ଫୁଲ ଫୁଟେ ଉଜ୍ଜଳ,
ଯା' ଦେଖି ଆନନ୍ଦ ହୁଏ ମୋହର । ୧ ।
ତୁମର କଲ୍ୟାଣେ ମୋର ସବୁ ଦିନେ
ନିର୍ମଳ ହୋଇଣ ଥାଉ ଅନ୍ତର;
ସଙ୍ଗୀଙ୍କ ମେଳେ ଆଉ ସବୁବେଳେ
ଗାଏଁ—ଜୟ ଜୟ ପରମେଶ୍ୱର;
ନାଚେ ଭକତ ଗାନେ ଶକତ,
ଦଅ ଜଣାଉଛି ପଦତଳର । ୨ ।

ଶ୍ରୀ ନୀଳକଣ୍ଠ ରଥ

## ସଂସାରର ପିତା

( କି ଭୟ ଦେଖାଅ ତାତ ପ୍ରଭୁ )

ସଂସାରର ପିତା ତୁମେ କରୁଣା ନିଧାନ,
ହୀନମତି ଶିଶୁ ଆମେ ଦୁର୍ବଳ ଅଜ୍ଞାନ । ୧ ।
ସ୍ନେହେ ପ୍ରାଣେ ଆମର ହେ ଦିଅ ପ୍ରେମ, ଆଶା,
ସ୍ନେହେ ସ୍ନେହେ ମୁଖେ ଦିଅ ସ୍ୱରଗର ଭାଷା । ୨ ।
ସୁଖେ ଦୁଃଖେ ଚିର ଦିନ ଯେହ୍ନେ ଦୟାମୟ,
ତୁମଠି ସୁମତି ରହେ ପାପ ପଥେ ଭୟ । ୩ ।
ଅସହାୟ ସନ୍ତାନଙ୍କ ସଙ୍ଗେ ସଙ୍ଗେ ରହି,
ତୁମର କାର୍ଯ୍ୟରେ ପିତା ଦିଅ ହେ ଲଗାଇ । ୪ ।
ଶିଖାଅ ଏ ସ୍ନେହେ କଣ୍ଠେ ତୁମ ନାମ ଗାନ,
ଧନ୍ୟ ହେଉ ଏଇ କ୍ଷୁଦ୍ର ମନ ଦେହ ପ୍ରାଣ । ୫ ।

——o——

## ସୁନ୍ଦର ସଂସାର

( ଗ୍ୟଲ ଗ୍ୟଲ ପକ୍ଷୀ ପ୍ରଭୃ )

ଦେଖ କି ସୁନ୍ଦର ଭାଇ ଏ ସଂସାର !
ଏହାର କରତା ସେ ଯେ ଅଟନ୍ତି ଈଶ୍ୱର । ୦ ।
ଚନ୍ଦ୍ର, ସୂର୍ଯ୍ୟ ତାରା ଜଳ ବାୟୁ ଧରା,
ପର୍ବତ ସାଗର ଆଦି ତିଆରି ତାଙ୍କର । ୧ ।
ଗଛ ଫୁଲ ଫଳ ପ୍ରାଣୀ ସକଳ
ଗଢ଼ିଛନ୍ତି ସବୁ ସେଇ ପରମ ଈଶ୍ୱର । ୨ ।
ଛଅ ଋତୁ ଦିନ ବହଇ ପବନ,

ହୁଏ ଶୀତ ଖରା ବର୍ଷା ଆଦେଶେ ତାଙ୍କର । ୩ ।
ରବି ଦିଏ ତାପ ଉଜ୍ଜ୍ୱଳ ଆଲୋକ,
ଦିଏ ଚାଳ ମେଘ ଜଳ ଆଜ୍ଞାରେ ତାଙ୍କର । ୪ ।
ଦୟାର ସାଗର ଜଗଦୀଶ୍ୱର,
କରିଛନ୍ତି ସବୁ—ଏଇ ସୁନ୍ଦର ସଂସାର । ୫ ।

——+——

## ଗୁରୁଭକ୍ତି

( ରାଧା ଧର ସଖୀ କର ପ୍ରଭ )

ଜନମି ମାଆ ପେଟରୁ, ନ ଜାଣନ୍ତେ କିଛୁ ନ ଥିଲେ ଗୁରୁ ହେ;
ଆମେ ଧନ୍ୟହୁଁ ତାଙ୍କ ଯୋଗରୁ ଯୋଦଶ୍ୱର ହେ । ୧ ।
କୁମ୍ଭାର ଚକରେ ନେଇ, ମାଟି ପିଣ୍ଡୁଳାଟି କପଟ ଦେଇ ହେ;
ଗଢ଼େ ଯାହା ମନେ କରେ ସେହି ଯୋଦଶ୍ୱର ହେ । ୨ ।
ସେହି ପରି ଗୁରୁ ପିତା, ପିଲା ଦିନୁ ଶିକ୍ଷା ଦିଅନ୍ତି କି ନା ହେ,
ଆମ ଜୀବନ ଦେବାକୁ ପୁନା ଯୋଦଶ୍ୱର ହେ । ୩ ।
ଗୁରୁ ଜୀବର ଜୀବନ, ତାଙ୍କ ପାଦ-ପୂଜା ଅମୂଲ୍ୟ ଧନ ହେ;
ତାହା କରି ହେବା ଧନ୍ୟ ଧନ୍ୟ ଯୋଦଶ୍ୱର ହେ । ୪ ।

ଶ୍ରୀ ନୀଳକଣ୍ଠ ଦାଶ

—※—

## ରାଜଭକ୍ତି

( ରସ ମାନସ ରାଧିକେଶ ପ୍ରଭ )

ଆସ ଭାଇମାନେ ବସି ଏକ ମନେ
ଗାଇବା ଟଳାଙ୍କ ଜୟ,

ଆମ୍ଭ ସ୍କୁଲେଶର ଦୟା-ଅବତାର
ତାହାଙ୍କର ହେଉ ଜୟ ॥ ୦ ॥
ସରଳ ସୁନ୍ଦର ମହତ ଉଦାତ୍ତ
ଯାହାଙ୍କର ଆଚରଣ,
ସେ ରାଜା ରାଣୀଙ୍କ ମଙ୍ଗଳ ନିମନ୍ତେ
ପୂଜିବା ପ୍ରଭୁ-ଚରଣ ॥ ୧ ।
ଗୁନ୍ଥ ଫୁଲମାଳ ଦିଅ କର ତାଳ
ନାଚ ଗାଅ ଆନନ୍ଦରେ,
ଏତିକ ମାଗୁଣି ଦିବ୍ୟ-ଦୃଷ୍ଟି-ପଥେ
ରଖ ଆମ୍ଭ ସ୍କୁଲେଶରେ ॥ ୨ ॥

ଶ୍ରୀ ନୀଳକଣ୍ଠ ରଥ

—ଃଃ(୦)ଃଃ—

## ତୃତୀୟ ସ୍ତବକ

( ଦ୍ୱିତୀୟ ଶ୍ରେଣୀ ପାଇଁ )

### ଈଶ୍ୱର-ବନ୍ଦନା

( ରାଗ ବଙ୍ଗଳାଶ୍ରୀ )

ଉଠ ସବୁ ଭାଇ ଅଉ ରାତି ନାହିଁ
ଉଠିଲୁ ଆକାଶେ ରବି,
ଆଲୋକେ ଭୁବନ ପୁଲକେ ମଗନ
ଦେଖ କି ସୁନ୍ଦର ଛବି ।
ଲୋହିତ ବରଣ ତରୁଣ ତପନ
ପୂରବ ଗଗନେ ହସେ,
କିବା ଟଳ ଟଳ କିବା ନିରମଳ
କିରଣେ ଜଗତ ଭସେ ।

ବିବିଧ ବରଣ କୁସୁମ-କାନନ
ବିତରେ ବିମଳ ବିଭା;
ଝଡ଼ଣ ଗଗନ ତାରା ଅଗଣନ
ଭୂତଳେ ଖସିଲେ କିବା ?
ଧବଳ ପର୍ବତ— ଅଞ୍ଚଳ-ଖଚିତ
ମୀନାରେ ମାଣିକ୍ୟ ଜଳେ,
ସରସୀ-ସଲିଳେ ପ୍ରଫୁଲ୍ଲ କମଳେ
ଗୁଞ୍ଜରନ୍ତି ଅଳିଦଳେ
ପବନ ପରଶେ କମ୍ପୁଛି ହରଷେ
ନଳିନୀ ସରସୀ-ଜଳେ,
ଲହରୀ ଲୀଳାରେ ସଲିଳ-ଖେଳାରେ
ଅପୂର୍ବ ହୀରକ ଜଳେ ।
ପଶୁ ପକ୍ଷିଗଣ କରୁଛନ୍ତି ସ୍ୱନ
କରୁଛନ୍ତି ବିଭୁ-ଗାନ,
ଝିଞ୍ଝିରର ଛଳେ ସତେ ନେତ୍ର-ଜଳେ
ଭାସୁଛନ୍ତି ତରୁଗଣ ।
ସଲିଳ, ପବନ, ଧରାତଳ, ବନ
ହରଷେ ମଗନ ସର୍ବେ,
ବିଧାତା ତାଙ୍କର ଆନନ୍ଦ-ଭଣ୍ଡାର
ବାଢ଼ିଛନ୍ତି କିବା ଭବେ ।

## ସ୍ତବ

( ରାଗ ମାନସ ଗ୍ରନ୍ଥକେଶ ପ୍ରଭ )

ଜୟ ଭଗବାନ ସର୍ବଶକ୍ତିମାନ ଜୟ ଜୟ ଭବପତି !
କରେଁ ପ୍ରଣିପାତ ଏହା ଲୋଡ଼େ ନାଥ ! ତୁମ ଠାରେ ରହୁ ମତି
ଅଖିଳ ସଂସାର ରଚନା ତୁମର ଯେ ଦିଗେ ବୁଲାଏ ଆଖି,
କିବା ଅପରୂପ ଦେଖି ତବ ରୂପ ରହି ଯାଏ ମନ ଲାଖି ।
ଆକାଶ ସାଗର ଗହନ ଶିଖର ଦେଖେଁ ମୁଁ ଆଖିରେ ଯାହା,
ଭାବେଁ ମୁଁ ନିଶ୍ଚୟ ଅହେ ଦୟାମୟ ! ତୁମ କରତତ ତାହା ।
କେତେ କେତେ ପକ୍ଷୀ ହୋଇ କଉତୁକୀ କରନ୍ତି କପଟ ମେଳା,
ବନରେ ଚରନ୍ତି ଆକାଶେ ବୁଲନ୍ତି କରନ୍ତି ସୁନ୍ଦର ଖେଳା ।
ନାଚ ନାଚି ସତେ ପୁଲକିତ ଚିତ୍ତେ ଗାଆନ୍ତି ଆନନ୍ଦେ ଗୀତ,
କି କହିବି, ପ୍ରଭୁ, ସେ ଗାନେ ତୁମ୍ଭର ହୁଏ ଶକ୍ତି ପ୍ରଚାରିତ ।
ପାଇଛି ଯେ ଆଖି ଦେଖିବାକୁ ବାକି ରହେ କି ଆଉ ତାହାର,
ମହିମା ତୁମର ସଦା ପାଖେ ତା'ର ହୁଏ ଜାଗୃତ ପ୍ରଚୁର ।

———:୦:———

## କୀର୍ତ୍ତନ

ଅନଳେ ଅଗ୍ନି ହୋଇ ବିରାଜନ୍ତି ସଦା ଯେହୁ,
ଜଳରେ ସ୍ନେହ ରୂପେ ଅଛନ୍ତି ପଶି ଯେହୁ;
ଓଷଧି ବନସ୍ପତି ସଭିଙ୍କ ଦେବତା ଯେହୁ,
ତାଙ୍କ ଚରଣେ ସଦା ମନ ଧିଆନ ରହୁ ।
—ତାଙ୍କର ନାମ-ଗାନେ ଏଇ ଜୀବନ ଯାଉ ।
—ତାଙ୍କର ପୂଜା ଧ୍ୟାନେ ଜୀବନ-ବ୍ରତ ପାହୁ ।

——:୦:——

## ମାତା, ପିତା ଓ ଗୁରୁ

( ଅଜ୍ଞାନ ତମିରେ ଚକ୍ଷୁ ଥିଲା ଅନ୍ଧକାର, ପ୍ରଭ )

ମାତା, ପିତା ଗୁରୁଦେବ—ତିନି ଶ୍ରେଷ୍ଠ ହେଲେ,
ସର୍ବ ତପସ୍ୟାର ଫଳ ନିଜେ ନିଜେ ଫଳେ ହେ ।
ମାତା, ପିତା, ଗୁରୁଦେବ ଜଗତର ସାର,
ତିନି ପରି କରେ ନାହିଁ କେହି ଉପକାର ହେ ।
ଏ ତିନିଙ୍କ ଠାରେ ଭକ୍ତି ରହେ ନାହିଁ ଯା'ର,
ବିଫଳ ନିଶ୍ଚୟ ସବୁ ଧର୍ମ କର୍ମ ତା'ର ହେ ।
ମାତୃ-ପିତୃ-ଗୁରୁ-ସେବା ଯେ ଲୋକ ନ କରେ,
ସେ ପାପିଷ୍ଠ, ନରାଧମ ସଂସାର ଭିତରେ ହେ ।

—:o:—

## ଜୟ ରାଜେଶ୍ୱର !

( ନାରଖାର ହୋଇ ଉତ୍କଳ ଜନନୀ, ପ୍ରଭ )

ଯେଉଁ ଉପାୟରେ ଆକାଶ-ପଥରେ
ଉଡ଼େ ପକ୍ଷୀ ପରି ନର,
ଆକାଶ-ବିମାନେ ଆନନ୍ଦିତ ମନେ—
ଶୁଣୁଅଛୁଁ ନିରନ୍ତର । ୦ ।
ବୁଢ଼ୀ ମାଆ ଠାରୁ ପୁରାଣ କଥାରୁ
ଆକାଶ—ଉଡ଼ା ବିମାନ,
ଏବେ ପ୍ରତ୍ୟକ୍ଷରେ ଦେଖ ଆନନ୍ଦରେ—
ଶୁଣୁଥିଲା ଯିନା କାନ । ୨
ଦେବତାଙ୍କ ପରି ବୁଦ୍ଧିର ଚାତୁରୀ
କହ କେ କରିବ ଛାଡ଼,

ପରମ ଉଦାର ସେହି ସର୍ବେଶ୍ୱର-
ଜୟ ଆସ ନାଚି ଗାଇ । ୭ ।

ଶ୍ରୀ ନୀଳକଣ୍ଠ ରଥ

——:୦:——

# ତୃତୀୟ ସ୍ତବକ

(ତୃତୀୟ ଶ୍ରେଣୀପାଇଁ)

## ସ୍ତୋତ୍ର

( ଗୋବିନ୍ଦଚନ୍ଦ୍ର ବୃତ୍ତ )

ପାଳୁଛ ଜୀବନ ନାଥ ! ତୁମରି କୃପାରେ,
କରୁଛ ଆମଙ୍କୁ ରକ୍ଷା କେତେ ଉପାୟରେ ।
ଗୁରୁ ଦ୍ୱାରେ ଦେଖୁ ସବୁ ମହିମା ତୁମର,
ଯୋଡ଼ ହାତେ ପ୍ରଣିପାତ କରୁଁ ବାରମ୍ବାର ।
ତୁମରି ଦୟାରେ ଏହି ଧରା ସୁଖଭରା,
ତରୁ ଲତା ଫୁଲ ଫଳେ ବହେ ଦୟା-ଧାରା ।
ତୁମରି ଆଦେଶେ ସଦା ବହୁଛି ପବନ,
ଯଥା କାଳେ କରେ ମେଘ ବାରି ବରଷଣ ।
ତୁମର ରୂପରି ପ୍ରଭା ଜଣାଏ ତପନ,
ରଜନୀରେ ନିଶାକର ମୁଗ୍ଧ କରେ ମନ ।
ଦିବା ନିଶା ଋତୁ ପକ୍ଷ ମାସ ଅବ୍ଦ ଯେତେ,
ନବ ନବ ଭାବ ତବ ଜଣାଏ ଉପତେ ।
ଦୟାର ସାଗର ତୁମେ ଶୋଭାର ଆଧାର,
ତୁମର ଚରଣେ ପିତା, ନମୁଁ ବାର ବାର ।

——:୦:——

# ସଂକୀର୍ତ୍ତନ

ବିପଦ ସମ୍ପଦରେ ଭରସା ଭଗବାନ
ତାଙ୍କର ଶ୍ରୀଚରଣେ ଦିଅ ଦେହ ମନ ପ୍ରାଣ ॥ ୦ ॥
ଅନନ୍ତ ଜ୍ଞାନମୟ ଉଦାର ଦୟାମୟ,
ଜଗତନାଥ ସେହି ସବୁ ତାଙ୍କର ଦାନ ॥ ୧ ॥
ତାଙ୍କର କୃପା ବଳେ ନାହିଁ ବିପଦ ଭୟ,
ପାଅ ଦମ, ଅଭୟ କର ନାମ କୀର୍ତ୍ତନ ॥ ୨ ॥
ଘୁଞ୍ଚିବ ହେ ସଂକଟ ସେହି ପୂଜିତ ନାମେ,
ଅଭୟାମୃତ-ସେତୁ ତାଙ୍କର ନାମ-ଗାନ ॥ ୩ ॥

——:o:——

# ଗୁରୁପୂଜା

[ ରାଧା ଧର ସଖୀ କର, ପ୍ରଭୃତି ]

ଯାହାଙ୍କ ଦୟାରେ ଭାଇ, ଅଜ୍ଞାନ ଅନ୍ଧାର ଯାଏ ପଳାଇ ହେ,
ତାଙ୍କୁ ପୂଜିବା ହରଷହୋଇ ମୋଦରେ ହେ । ୧ ।
ଆମ ହୃଦ-ଅନ୍ଧକାରେ ଜ୍ଞାନ-କଳିତା ଯେ ଜାଳନ୍ତି ଧୀରେ ହେ,
ତାଙ୍କୁ ପୂଜିବା ହରଷଭରେ ମୋଦରେ ହେ । ୨ ।
ଝିଅଙ୍କର ମନ ଜାଣି, ନିତି ଶିକ୍ଷା ଶେଷ ତ ଦିଅନ୍ତି ଆଣି ହେ,
ତାଙ୍କୁ ପୂଜିବା ଯୋଡ଼ିଣ ପାଣି ମୋଦରେ ହେ । ୩ ।
କଲେ ତୁଷ୍ଟ ତାଙ୍କ ମନ, ହୋଇବ ତ ଭାଇ ବିଦ୍ୟା ଅର୍ଜନ ହେ,
ସର୍ବେ ବୋଲିବେଟି ଧନ୍ୟ ଧନ୍ୟ ମୋଦରେ ହେ । ୪ ।

ଶ୍ରୀ ନୀଳକଣ୍ଠ ରଥ

# ମାତା

( ରାଗ—ରାମକେରୀ )

ଆଉ କିଏ ହେବ ମାତାଙ୍କ ସମ ଏହି ଜଗତେ,
କେତେ ଦୁଃଖ କ୍ଳେଶ ସହନ୍ତି ପୁଅ କନ୍ୟା ଜନମନ୍ତେ ।
ଗର୍ଭେ ଧରି ମାତା ସହିଲେ ଯେତେ ଯେତେ କଷଣ,
କିଏ ଅବା ତାହା ଶୁଝିବ ଦେଇ କେଉଁ ରତନ !
ଶିଶୁ ସମୟରେ ନ ଥିଲା ଉଠି ବସିବା ବଳ,
ଅତି ଯତନେ ସେ ଶୁଆଉଥିଲେ ଶେଯେ କଅଁଳ ।
କେତେ ଯତନରେ ଖୁଆଇ କେତେ ଆଦର କରି,
କାଖରେ ଘେନିଣ ବୁଲନ୍ତି ଆହା ମାତା ମୋହରି ।
କାନ୍ଦିଲେ କାନ୍ଦଣ ଉଠଇ ତାହାଙ୍କର ଜୀବନ,
ଧାଇଁ ଆସି କୋଳେ ଘେନନ୍ତି କାର୍ଯ୍ୟ ଛାଡ଼ି ତକ୍ଷଣ ।
ପଡ଼ିଗଲେ ଧୂଳି ଦେହରେ ଝାଡ଼ି ପଣନ୍ତେ ଆହା,
ବସାନ୍ତି କୋମଳ କୋଳେ ମା ସୁଖ ଦୁଃଖର ସାହା ।
ପାଶୋରନ୍ତି ଦୁଃଖ ସୁଖ ସେ ଆହା ମୋର ସ୍ନେହରେ,
କେଉଁ ପରି ତାଙ୍କୁ ତୋଷିବ କହ ହେ ଭାଇ ଥରେ ।
ଧୀର ବଚନରେ ତୋଷିବା ମାନ ତାଙ୍କ ବଚନ,
ତାଙ୍କ କାର୍ଯ୍ୟ ଆଗେ କରିବା ଯାଉ ପଛେ ଜୀବନ ।
ଧୀରେ ବହୁଥିଲେ ପବନ ହୁଏ ସେ ସୁଖକର,
କେତେ ଗଛ ଭାଙ୍ଗେ ବତାସ ଦେଖି ମାଡ଼ଇ ଡର ।
ତୁମ୍ଭ କଥା ଯେବେ ନ ମାନେ କେହି କୌଣସି ବେଳେ,
କେତେ କଷ୍ଟ ହୁଏ ବହିବା ପାଇଁ ତାହାର ମେଳେ ।
ପ୍ରାଣ-ମନ ଦେଇ ସେବିବା ଆମ୍ଭେ ମାତୃଚରଣ,
ଆଉ କେହି ନାହିଁ ମାତାଙ୍କ ସମ ଏହି ଭୁବନ ।

ଶ୍ରୀ ଦୟାନିଧି ମିଶ୍ର

## (ଆମର ସମ୍ରାଟ)

( ରାଗ କଲସା )

ଭାରତ ଈଶ୍ୱର ସେହି ଇଂଲଣ୍ଡର ପତି,
ସକଳେ ଭକତିଭାବେ କର ହେ ପ୍ରଣତି ।
ଦୟାର ସାଗର ସେହି, ମହିଷୀ ତାଙ୍କର,
ଅତି ଦୟାବତୀ ସେ ତ ଜଗତ ମଧର ।
ପ୍ରଜାଙ୍କ ମଙ୍ଗଳ ପାଇଁ ସତତ ମନନ,
ଧରାତଳେ ନାହିଁ କେହି ଦୁହିଁଙ୍କ ସମାନ ।
ବ୍ରିଟିଶ୍ ରାଜତ୍ୱେ ଭାନୁ ନ ହୁଅଇ ଅସ୍ତ,
ରହିଛି ଜଗତେ ତା'ର ଶକତି ମହତ ।
ପୁରସ୍କାର ସାଧୁ ଜନେ, ଶାସ୍ତି ଅସାଧୁର,
ତସ୍କରର ଭୟ ଅତ୍ର ନାହିଁ ହେ ପ୍ରଚୁର ।
ବିବିଧ ବିଧାନ ସଦା କରଣ ପ୍ରଚୁର,
ପ୍ରଜା-ସୁଖ-ଚିନ୍ତା କରି ଥାନ୍ତି ନିରନ୍ତର ।
ହିତୈଷୀ ରାଜାଙ୍କ ପ୍ରତି ଭକ୍ତି-ପ୍ରଦର୍ଶନ,
'ରାଜଭକ୍ତି' ନାମେ କହୁଥାନ୍ତି ସର୍ବଜନ ।
ରାଜା ରାଣୀ ଦୀର୍ଘଜୀବୀ ହୋଇବା ସକାଶେ,
କର ହେ ସ୍ମରଣ ସଦା ପ୍ରଭୁ ଜଗଦୀଶେ

---

# ଚତୁର୍ଥ ସ୍ତବକ

[ ଚତୁର୍ଥ ଶ୍ରେଣୀ ପାଇଁ ]

## ଜଗଦୀଶ

ନମେଁ ଭଗବାନ          ଅଟ ହେ ବିଶ୍ୱ ପ୍ରାଣ
ସର୍ବଶକ୍ତି, ସର୍ବମୟ,

ନିଖିଲ ସଂସାର ରଚିତ ତୁମ୍ଭର
ଗାଉଛନ୍ତି ତୁମ୍ଭ ଜୟ ।
ଅସୀମ ଗଗନ କାନନ ଗହନ
ଚତୁର୍ଦ୍ଦିଗେ ଦିଶେ ଯାହା,
ହୁଏ ଏଇ ଜ୍ଞାନ — ପ୍ରଭୁ ହେ ମହାନ
ଧରିଛି ତୁମ୍ଭଙ୍କୁ ତାହା ।
ରବି ଶଶୀ ତାରା ପ୍ରକାଶନ୍ତି ଧରା
ତୁମରି ଆଦେଶ ବଳେ,
ନଦ ନଦୀ ଯେତେ ବହନ୍ତି ନିରତେ
ସୁଲଳିତ କଳ କଳେ ।
ଯୂଥୀ ଶେଫାଳିକା ମାଳତୀ ମଲ୍ଲିକା
ଉପବନେ ଫୁଟି ରହେ,
ଆଦେଶେ ତୁମରି ସୌରଭ ପ୍ରସରି
ମାନବ-ମାନସ ମୋହେ ।
ଧନୀ ଓ ଭିଖାରୀ ସମ ଅଧିକାରୀ
ପାଇବାକୁ ତୁମ୍ଭ ଦୟା,
ଜୀବନ୍ତ ଅଚଳ ଜଳଧି ଅତଳ
ଜଡ଼ ତୁମ୍ଭର ମାୟା ।
ଆହେ ଦୟାମୟ ନାଶ ସର୍ବ ଭୟ
ଅଜ୍ଞାନ-ତିମିର ଦୂର,
ଜ୍ଞାନ ଶକ୍ତି ଦେଇ ବାସନା ପୂରାଇ
ଜନମ ସାର୍ଥକ କର ।

——:(o):——

# ପ୍ରାର୍ଥନା

( ଅଜ୍ଞାନ ତମିରେ ପ୍ରସ୍ତ )

ଆମ୍ଭେ ସବୁ ଦୀନ ଭାବେ ଯେତେ ବାଳଗଣେ,
କରୁଁ ନାଥ ପ୍ରଣିପାତ ତୁମ୍ଭର ଚରଣେ ।
ଆମ୍ଭେ ସବୁ ପଶୁ ପରି ଅତୀବ ଅଜ୍ଞାନ,
ପରାଧୀନ ଜ୍ଞାନହୀନ ଅନ୍ଧଙ୍କ ସମାନ ।
ତୁମ୍ଭେ ପିତା ଜ୍ଞାନଦାତା ମନେ ପ୍ରାଣେ ଧାଉଁ,
ରାତ୍ର ଦିନ ତବାଧୀନ ଯେସ୍ନେ ଆମ୍ଭେ ରହୁଁ ।
କରେ ନାହିଁ କେହୁ ସ୍ନେହ ତୁମ୍ଭର ସମାନ,
ତୁମ୍ଭ ଠାରୁ ଏ ଜଗତ ପାଇଛନ୍ତି ଜୀବନ ।
ଦେହ ମନ ପ୍ରାଣ ଧନ ସକଳ ତୁମ୍ଭର,
ଅହେ ପିତା କଷ୍ଟ ହେଲେ ନାହିଁ ତ ଆମ୍ଭର ।
ଜୟ କହି ଜୟ ଦେଇ ପୂଜିବୁଁ ତୁମ୍ଭଙ୍କୁ,
ବାର ବାର ନମସ୍କାର କରୁଁ ଚରଣକୁ ।
ଅହେ ପିତା କୃତଜ୍ଞତା ନିଅ ଉପହାର,
ପାଇ ନାହିଁ ତୁମ୍ଭ ଭଳି ପ୍ରିୟ ଏ ସଂସାର ।
ଆମ୍ଭେ ଅତି ମୂଢ଼ମତି ଜ୍ଞାନବୁଦ୍ଧି ହୀନ,
ଯଥାଶକ୍ତି କରୁଁ ଭକ୍ତି ଯେସ୍ନ ରାତ୍ର ଦିନ ।
ଯେପରି ପ୍ରଭୁ ହେ ଆମ୍ଭେ କୁପଥେ ନ ଯାଉଁ,
ମିଳି ସର୍ବେ ଏକ ଠବେ ତୁମ୍ଭ ଗୁଣ ଗାଉଁ ।
ବିଦ୍ୟାଧନ ଉପାର୍ଜନ ନିତି ନିତି କରୁଁ,
ବିଦ୍ୟାଳୟେ ଶିଖି ବିଦ୍ୟା ସୁଖେ କାଳ ହରୁଁ ।
ପିତା ମାତା ଭଗ୍ନୀ ଭ୍ରାତା ବାନ୍ଧବ ସକଳ,
ସେମାନଙ୍କ ନିରନ୍ତର କର ହେ କୁଶଳ ।

## —ଗାଅ ହେ—

ଗାଅ ହେ ଗାଅ
ଆନନ୍ଦେ ବନ୍ଧୁ—
ପରମାନନ୍ଦ-ସଙ୍ଗୀତ;
ପୂଜ ହେ ନିତ୍ୟ
ଗୁରୁ-ଗୋବିନ୍ଦ
ହୃଦ-ଆଦର ସହିତ । ୦ ।

ମନ୍ତ୍ର ହେ ପ୍ରଭୁ
ସଙ୍ଗ ସରସ
ସରୋଜ-ପଦେ ସତତ,
ବୃଥା-ଗଳପ
ମିଥ୍ୟା-ଆଳାପ
ଛନ୍ଦାରୁ ହୁଅ ବିରତ ୧—
ଭକ୍ତ-ବନ୍ଦନ
ନିତ୍ୟ-ରଞ୍ଜନ
ସତ୍ୟ, ଅଚ୍ୟୁତ, ଅନନ୍ତ
ପରମ ପିତା
କରମ ଦାତା
ପ୍ରେମ-କିଵଦ୍ଧା ସେଇ ତ ୨—

[ ସ୍ୱର—କି ଯୋଗେ ସ୍ନେହ ରମଣୀବର ନୟନେ ମୋର ପଡ଼ିଲା ]

ଶ୍ରୀ ସତ୍ୟବାଦୀ ପାଣିଗ୍ରାହୀ କବିଭୂଷଣ



# ପବିତ୍ର ସେବା

ବାଳକ ହନୁ ବାବୁ
ଭକ୍ତି ତୁ ଭୁଲ ନା । ୦ ।

ପିତା ମାତା ଗୁରୁଜନ
ସେବା ଅମୃ ପୁଣ୍ୟ ଧନ
କର ତାଙ୍କ ଶ୍ରୀଚରଣେ
ପ୍ରେମ ଅରଚନା । ୧ ।

ପିତା ଧର୍ମ ପିତା ସତ୍ୟ
ପିତା ପ୍ରାଣ ପ୍ରେମ ମନ୍ତ୍ର
ସେ ମନ୍ତ୍ରେ ହୋଇ ଦୀକ୍ଷିତ
ସାଧ ସେ ସାଧନା । ୨ ।

ମାତା ନାମ ସୁଧାମୟ
ହରେ ଦୁଃଖ ତାପ ଭୟ
ଭଜ ସେଇ ନାମ ସଦା
ସନ୍ତାପେ ପଡ଼ା ନା । ୩ ।

( ସ୍ୱର—ଯାଅ ଯାଅରେ ସଖି ସଙ୍ଗ ତୁ ଲୋଡ଼ ନା )

ଶ୍ରୀ ସତ୍ୟବାଦୀ ପାଣିଗ୍ରାହୀ କବଭୂଷଣ

—୦:୦:୦—

## ପ୍ରଭୁ ପ୍ରତିନିଧି

( ରାଗ—କଲହଂସ କେଦାର )

ରାଜ-ପ୍ରତିନିଧି ମର୍ତ୍ତ୍ୟେ ନରପତି,
ରଖ ତାଙ୍କ ଠାରେ ଅଚଳା ଭକତି;
ଧର୍ମ-ଶାସ୍ତ୍ରମତେ ରାଜଦ୍ରୋହୀ ଜନ
ଦୁସ୍ତର ନରକେ ରହେ ନିମଗନ ।
ରକ୍ଷା କରେ ରାଜା ଧନ ମାନ ପ୍ରାଣ,
ରାଜା ବିନା ନାହିଁ ଦେଶର କଲ୍ୟାଣ;
ପ୍ରକୃତ ଯେ ଜନ ହୁଏ ଦେଶଭକ୍ତ,
ରାଜଭକ୍ତି-ହୀନ କେବେ ନୁହେ ସେ ତ ।
ଭକ୍ତିର ଆକର ଏହି ହିନ୍ଦୁସ୍ଥାନ,
ଭକ୍ତିର ପ୍ରଭାବେ ଜଗତେ ପ୍ରଧାନ;
ରାଜଭକ୍ତ ପ୍ରଜା ଭାରତ-ସନ୍ତାନ,
ମନେ ସଦା ଲୋଡ଼େ ରାଜାଙ୍କ କଲ୍ୟାଣ ।

—:()o():—

## ପିତା ବଡ ଶୁଭଙ୍କାରୀ

( ରାଗ—ମଙ୍ଗଳ )

ପିତା ପରି ଶୁଭକାରୀ ନୁହେ କେ ନିଶ୍ଚୟ,
ଜନନୀ ସମାନ କା'ର ସ୍ନେହ ଅତିଶୟ ?
ଅଶନ, ବସନ ଆଉ ସୁଖର କାରଣ,
ଯେ ଯେ ବସ୍ତୁ ସଦା ହୁଏ ଆମ ପ୍ରୟୋଜନ;
ସେ ସମସ୍ତ ଦେଇ ପିତା କରନ୍ତି ପାଳନ,
ବିଦ୍ୟା-ଶିକ୍ଷା ଦାନେ କେତେ କରନ୍ତି ଯତନ ।

ଯଦି ବା କେବେ ଜନକ କରନ୍ତି ତାଡ଼ନା,
ତନୟର ଶୁଭ ଖାଲି କରଣ କାମନା ।
ପକ୍ଷି ବିଦ୍ୟା ସୁତ ଯଦି ହୁଏ ଗୁଣବାନ,
ମଣନ୍ତି ନିଜକୁ ପିତା ସୁଖୀ ଭାଗ୍ୟବାନ ।
ଭାବଣ ଦେଖିଲେ ଶିଶୁ ! ଜନକ ସମାନ,
ପୃଥ୍ୱୀରେ ଶୁଭକାଂକ୍ଷୀ ନୁହେ କେଉଁ ଜନ ।



# ନୀତିକଥା

## ( ଭାରତ ବୃତ୍ତ )

ସତ୍ୟ ଅଟେ ମହା ପୁଣ୍ୟ ଅହେ ଶିଶୁଗଣ,
ସତ୍ୟ କଥା କହି ସଦା ତୋଷ ଜନମନ ।
ଗଲେ ଯାଉ ପଛେ ପ୍ରାଣ ମିଥ୍ୟା ନ କହିବ,
ମିଥ୍ୟା କହିଲେ ସଂସାରେ ଦୁର୍ଗତି ଭୋଗିବ ।
ପିତାମାତା ଗୁରୁଜନେ ରଖିଥିବ ଭକ୍ତି,
ତାଙ୍କ ଆଦେଶପାଳନେ ରଖିଥିବ ମତି ।
ଜନ୍ମଦାତ୍ରୀ ମାତା ସମ କେ ଅଛି ସଂସାରେ ?
ରହିଅଛି ପ୍ରାଣ ଆମ୍ଭର ତାଙ୍କର କୃପାରେ ।
ପିତାମାତା ଦେବ ଦେବୀ, ନୁହନ୍ତି ମାନବ,
ତାଙ୍କ ସେବାରେ ଅରପ ସକଳ ବିଭବ ।
ଭାଇ ଭଉଣୀଙ୍କି ସ୍ନେହ କରୁଥିବ ନିତି,
ମିଷ୍ଟ କଥା କହ ସଦା ଲଭ ତାଙ୍କ ପ୍ରୀତି ।

ବିପଦ ପଡ଼ିଲେ କେବେ କାତର ନୋହିବ,
ସମ୍ପଦ ସମୟେ ସଦା ଗରବ ତେଜିବ ।
ନ ରଖିବ କେବେ ଆତ୍ମ ପର ଭେଦଭାବ,
ସଂସାର ଏକ କୁଟୁମ୍ବ ବୋଲି ଭାବିଥିବ ।
ଈଶ୍ୱରଙ୍କ ପାଦପଦ୍ମେ ରଖିଥିବ ମନ,
ତାରିବେ ବିପଦୁ ପ୍ରଭୁ ପରମକାରଣ ।
ଜଗତ୍କର୍ତ୍ତା ଜଗନ୍ନାଥ ପରମ ଈଶ୍ୱର,
ତାଙ୍କ ପାଦପଦ୍ମେ ସର୍ବେ ସେବ ନିରନ୍ତର ।

ଶ୍ରୀ ଦୟାନିଧି ମିଶ୍ର, ବି. ଏ., ଏଲ୍. ଟି.

——o——

## ଗୁରୁ-ନାମ-କୀର୍ତ୍ତନ

( ମୋହନ ଗୀତ ଚନ୍ଦ୍ରା ପଡ଼ିଲା ମା, ପ୍ରଭୃତି )

ସଂସାରେ ସାର ଗୁରୁ-ପୂଜନ ହେ ॥ ୦ ॥
ଅନନ୍ତ ଗୁରୁ ମହିମା ନାହିଁ ହେ ତାର ସୀମା
ଆନନ୍ଦେ କର ସଦା କୀର୍ତ୍ତନ ହେ ॥ ୧ ॥
କର ଗୁରୁ-ଧିଆନ ଗୁରୁଙ୍କ ଗୁଣଗାନ
ହେବ ସାଧୁ ଉଦାର ଜୀବନ ହେ ॥ ୨ ॥



# ପଞ୍ଚମ ସ୍ତବକ

## ( ପଞ୍ଚମ ଶ୍ରେଣୀ ପାଇଁ )

## ନିବେଦନ

( ବଙ୍ଗଳାଶ୍ରୀ )

ହୃଦୟ-ବେଦନା ଜଣାଇବି ବୋଲି
ଅଛଇ ତୁମର ଦ୍ୱାରେ,
କାଙ୍ଗାଳ ବୋଲି ହେ ଠେଲି ନାହିଁ ପାଦେ
ଆସ ହେ ହୃଦୟ-ଘରେ । ୧ ।
ଅନିତ୍ୟ ଅସାର ସଂସାରର ଲୀଳା
ଭୁଲାଇ ରଖିଛି ମୋତେ,
( ଘୋଷା ) ବର୍ଣ୍ଣି ନ ପାରଇ ଏ ପାପ ରସନା
ତୁମର ମହିମା ଯେତେ । ୨ ।
ଜୀର୍ଣ୍ଣ ଦେହ-ତରୀ ଏ ଭବ-ତୋଫାନେ
ସଦା ବୁଡ଼ୁ ବୁଡ଼ୁ ପ୍ରାୟ,
ଅବସନ୍ନ ଦେହେ ରହିଅଛି ପଡ଼ି
ନିରୁପାୟ, ନିଃସହାୟ । ୩ ।
ବାସନା ମୋହର ତୃଷ୍ଣାର୍ଥ ଭବେଶ
ତାମସିକ ଭାବ ହର,
ହୃଦୟର ଯେତେ ବେଦନା ସନ୍ତାପ
ଘଞ୍ଚାଅ କରୁଣା କର । ୪ ।

—:॥(୦)॥:—

## ତୁମେ ସୁନ୍ଦର

( କୀର୍ତ୍ତନ )

ଦେଖି ନାହିଁ କେବେ ପ୍ରଭୁ ! ଦିଶୁଛ କପଟ ତୁମେ,
ଶୁଣି ନାହିଁ କେବେ ନାଥ ! ଧରିଛ କି ରୂପ ତୁମେ ।
ବୁଝିଅଛୁ ଅନୁମାନେ ତୁମେ ବିଶ୍ୱବିମୋହନ;
ଜାଣିଅଛୁ ଅନୁଭବେ ତୁମେ ଅଖିଳଭୂଷଣ ।
ତୁମ କୃପା ବଳେ ସତେ ଗମ୍ୟ ଭବ, ଜଗନ୍ନାଥ,
ବିଶ୍ୱ,ସିନ୍ଧୁ ମନୋହର ତୁମରି ଦୟାରେ ନାଥ !



## ରାଜା ଓ ପ୍ରଜା

( ରାଗ କଳସା )

ପ୍ରଜାଧର୍ମ ଭାରତର କର୍ତ୍ତବ୍ୟ କରମ,
କର୍ତ୍ତବ୍ୟ-ସାଧନେ ହୁଏ ପରମ ଧରମ ।
ତନୟ ସହିତ ଯେଉଁ ସମ୍ବନ୍ଧ ପିତାର,
ପ୍ରଜାଙ୍କ ସହିତ ସେହି ସମ୍ବନ୍ଧ ରାଜାର ।
ପ୍ରଜାର ସର୍ବସ୍ୱ ରାଜା, ପ୍ରଜାର ସମ୍ମାନ
ରାଜାର କଲ୍ୟାଣେ ହୁଏ ପ୍ରଜାର କଲ୍ୟାଣ ।
ରାଜାହିଁ ପ୍ରଜାର ପିତା, ରାଜାହିଁ ଜୀବନ,
ରାଜାର ଅଭାବେ ରାଜ୍ୟ କବନ୍ଧ ସମାନ ।
ରାଜାର ସର୍ବସ୍ୱ ପ୍ରଜା, ପ୍ରଜା ମହାବଳ,
ପ୍ରଜାଙ୍କ ମଙ୍ଗଳେ ହୁଏ ରାଜାର ମଙ୍ଗଳ ।
ରାଜାର ସନ୍ତାନ ପ୍ରଜା, ରାଜାର ପରାଣ,
ପ୍ରଜାହୀନ ରାଜ୍ୟ ସତେ ଶ୍ମଶାନ ସମାନ ।



## ତୁମରି ସାଜ

( ଯଖନ ସଘନ ଗଗନ ଗରଜେ, ପ୍ରଭୃ )

ହେ ବିଶ୍ୱ ସ୍ରଜନ, ଏ ମର ଭୁବନ
ପୂର୍ଣ୍ଣ ତୁମରି ସାଜ ହେ,
ନିର୍ମଳତମ ଶିଶୁ-ଜନ ପ୍ରେମ—
ହୃଦୟାସନେ ରାଜ ହେ ॥ ୦ ॥

ରବି, ଶଶୀ, ତାରା
ଗଗନ-ପସରା
ରଚିଛ କାହାର କାର୍ଯ୍ୟେ ହେ
ତୁମରି ମୂରତି ମଙ୍ଗଳ-ଆରତି
ଭୁବନେ ଭୁବନେ ବାଜେ ହେ—୧—

ତରୁ ଶିଶୁ ଲତା
ତୀରେ ଗିରି-ସୁତା
ଝର ଝର ପରଶାତେ ହେ,
କି ମୋହନ ଛନ୍ଦେ ନବ ନାଦ ବନ୍ଦେ
ଗାଏ ହସି ସନ୍ଧ୍ୟା ପ୍ରାତେ ହେ—୨—

ତୁମରି ବିଭୂତି
ତୁମରି ରାଜୁଛି
ବିଶ୍ୱ ଜନ-ମନ ମାଝେ ହେ,
ତୁମରି ମଧୁର ମହିମାର ତେଜେ
ହୃଦ-ତମ ହରେ ଲାଜେ ହେ—୩—

ଶ୍ରୀ ସତ୍ୟବାଦୀ ପାଣିଗ୍ରାହୀ କବିଭୂଷଣ

## ମାତା ପିତା ପ୍ରତ୍ୟକ୍ଷ ଦେବତା

(ଭ୍ରମର ବୃତ୍ତ)

ପିତା ସ୍ୱର୍ଗ ପିତା ଧର୍ମ ପିତା ମହାତପ,
ତୁଷ୍ଟ ହେଲେ ପିତା, ତୁଷ୍ଟ ଦେବ ଦେବୀ ସର୍ବ ।
ଜନନୀର ପୁଣ୍ୟ ସ୍ତନ୍ୟ ଅମୃତ ସମାନ,
ତେଣୁ ସ୍ତନ୍ୟ-ପାନେ ରହେ ସନ୍ତାନର ପ୍ରାଣ ।
ମାତା ପିତା ଏ ଜଗତେ ପ୍ରତ୍ୟକ୍ଷ ଦେବତା ।,
ମାତା ପିତା ମହାଗୁରୁ ଶାସ୍ତ୍ରର ଏ କଥା ।
ମା-ବାପର ସ୍ନେହ-ଋଣ ଜଗତ ମଧ୍ୟରେ,
ନ ପାରେ ଶୁଝି ସନ୍ତାନ କେବେ ଜୀବନରେ ।
ଜନକ ଜନନୀ ପଦେ ଦୃଢ଼ ଭକ୍ତି ଯା'ର,
ଅନାୟାସେ ସର୍ବ କାର୍ଯ୍ୟ ହୁଏ ସିଦ୍ଧ ତାର ।

◯:୦:◯

## ସମ୍ରାଟ

(ଥପାନା ତାନା ମାନା, ପ୍ରଭୃ)

ଭାଇ ! ସମ୍ରାଟ ତୁମେ ଜାଣ କିଏ ଆମର । ୦ ।
ବହୁଦୂର ସାଗର ମଝିରେ ଯାହାର ଘର,
ହେବ ସାତ ହଜାର ମାଇଲ ଏଠାରୁ ଦୂର । ୧ ।
ଆମ ଦେଶ ହାଲଚାଲ କରନ୍ତି ଦୂରୁଁ ବସିର,
ଦେଖ କେଡ଼େ ଚତୁର ତାହାଙ୍କୁ ଆମ ଜୁହାର । ୨ ।
ଦୟା ଅବତାର ସେ ଧୀର ବୀର ଶୂର ସେ,
ସୁଖ ଶାନ୍ତି ଦିଅନ୍ତୁ ତାହାଙ୍କୁ ସଦା ଈଶ୍ୱର । ୩ ।

ଶ୍ରୀ ଗୋପୀନାଥ ଦାସ

# ଅର୍ପଣ

[ ରାଗ ଅଶାବରୀ ]

ବିଶ୍ୱଜୀବନ ହେ, ତୁମ୍ଭଙ୍କୁ କରୁଣା-ସିନ୍ଧୁ,
ବୋଲିବାକୁ ମନ ବଳୁ ନାହିଁ ଯେଣୁ ସିନ୍ଧୁ, ତବ କୃପା-ବିନ୍ଦୁ, (ଘୋଷା)

ତୁମ୍ଭ ଭଜନରେ ହେବ ନାହିଁ ନାଥ
ମାଳା ଜପିବାକୁ ବାଧ,
କେତେ କୋଟି ଛନ୍ଦ କଣ୍ଠି ସେ ମାଳାର
କେ ଜପି କରିବ ସାଧ । ୧ ।

ଦେଇ ନାହିଁ ବଳ ପଦ-ଧୂଳି ଘେନି
ପାରିବ ନାହିଁ ମୋ ମୁଣ୍ଡ,
କୋଟି କୋଟି ରବି ଧୂଳି ରୂପେ ତୁମ୍ଭ
ପାଦେ ହୋଇଛନ୍ତି ଗୁଣ୍ଡ । ୨ ।

ହୃଦୟର କଥା ଜାଣିବାକୁ ଅଛି
ତୁମ୍ଭର ଅସୀମ ଶକ୍ତି,
ସେତିକି ଘେନିବ ଯେତିକି ଅଛି ମୋ
ହୃଦେ ତୁମ୍ଭ ପ୍ରତି ଭକ୍ତି । ୩ ।

ଥାପିବାକୁ ତୁମ୍ଭ ମୂରତି ମୋ କ୍ଷୁଦ୍ର
ହୃଦୟରେ ନାହିଁ ସ୍ଥାନ,
ସର୍ଷପ ଗର୍ଭରେ ରହି କି ପାରଇ
ହିମାଳୟ ସାନୁମାନ । ୪ ।

କି ଦେଇ ପୂଜିବି ଯାହା ମୁଁ ଦେଖୁଛି
ସବୁ ତୁମ୍ଭରି ପ୍ରସାଦ,
ଯା ପ୍ରସାଦ ତାଙ୍କୁ ଅରପିଲେ
ହେବ ସିନା ଅପରାଧ । ୫ ।

ମୁଁ କାର ମାତର ମୋର ନୁହେ ବୋଲି
କହିବାକୁ ନାହିଁ ବାଟ,
ତୁହି ଶ୍ରୀଚରଣେ ଅର୍ପଣ କରୁଛି
ଯେନ ତା ବିଶ୍ୱ-ସମ୍ରାଟ । ୨ ।
୯ କବି ଗଙ୍ଗାଧର ମେହେର

—ঃ(০)ঃ—

## ମାତୃସ୍ନେହ

( ରାଗ କଳସା )

ଅହୋ କି ଆଶ୍ଚର୍ଯ୍ୟ ମାୟା ଜନନୀ ଅନ୍ତରେ,
ଜୀବର ମଙ୍ଗଳ ହେତୁ ସଦା ବାସ କରେ ।
ଦଶ ମାସ ଦଶ ଦିନ ଧରି ସେ ଜଠରେ,
ଯାପନ କରନ୍ତି କାଳ କେତେ ବା କଷ୍ଟରେ ।
ସହନ୍ତି ଜନନୀ ଏହି ବେଦନା ସକଳ,
ଦେଖିବାକୁ ସନ୍ତାନର ମଙ୍ଗଳ କେବଳ ।
ଯେପରି ସୁନ୍ଦର କିଛି ଦେଖିଲେ ନୟନେ,
ହୁଏ ତାହା ଉପଦେଶେ ହର୍ଷ ଉପସ୍ଥିତ ମନେ ।
ସେହିପରି ପ୍ରସବିଲେ ଜନନୀ ସନ୍ତାନ,
ହୁଏ ହୃଦେ ପ୍ରେମ-ସ୍ନେହ-ରସ-ସଞ୍ଚରଣ ।
ସୁକୁମାରି ଶିଶୁ ଯଦି କହେ କଥା ଗେଲେ,
ଜନନୀଙ୍କ ମନ ପ୍ରାଣ ଆନନ୍ଦେ ଉଛୁଳେ ।
ବିଦ୍ୟା ଅଧ୍ୟୟନ କର୍ମ୍ମ ଧନର ଆଶାରେ,
ହୃଦୟର ଧନ ଯଦି ରହେ ବିଦେଶରେ;

ଜନନୀ ଶରୀର ମାଂସ କରଣ ଧାରଣ,
ଉଣାନ୍ତ ତାହାର ପାଖେ ଆପଣାର ମନ ।
ସେଠାରେ ବିପଦେ ଯଦି ପଡ଼ଇ କୁମାର,
ମାଆଙ୍କ ଦୁଃଖର ଅନ୍ତ ରହେ ନାହିଁ ପାର ।
ଭାବ ଥରେ ଦେଖ ଭାଇ ନାହିଁ ଅନ୍ୟ ଜନ,
ପୁତ୍ର-ହିତ-ଅଭିଳାଷୀ, ଜନନୀ ସମାନ ।
ଏରୂପ ମାତାଙ୍କ ପଦେ ଭକ୍ତି ଯେ ନ କରେ,
ଅକୃତଜ୍ଞ, ଅଧମ ସେ ସଂସାର ଭିତରେ ।

## ଈଶ୍ୱର ପ୍ରକୃତ ବନ୍ଧୁ

(ଯାରେ ଯା ତୁ ବାଟେ ବାଟେ, ପ୍ରଭୃ)

ଫୁଟିଅଛି ସରୋବରେ କମଳିନୀକର,
ଧରିଅଛି କି ଆଶ୍ଚର୍ଯ୍ୟ ଶୋଭା ମନୋହର ।
ଗୁଣୁ ଗୁଣୁ ଗୁଣୁ ଧ୍ୱନି କେତେ ମଧୁକର,
କରନ୍ତି ତା ମଧୁ ପାନ ହୋଇ ହର୍ଷଭର ।
ଶୁଖିଯିବ ସରୋବର ଯେବେ ଏହି ଦିନ,
ଆସିବେ କି ଅଳିଦଳ କରି ମଧୁ ସ୍ୱନ ?
ହୁଅନ୍ତି ଅନେକ ବନ୍ଧୁ ସୁଖ ସୁସମୟେ,
ହୋଇ ଥାନ୍ତି ପର ହାୟ ସର୍ବେ ଅସମୟେ ।
କେବଳ ଈଶ୍ୱର, ଏହି ବିଶ୍ୱପତି ଯେହୁ,
ସକଳ ସମୟେ ବନ୍ଧୁ, ସମସ୍ତଙ୍କ ସେହୁ ।

—୦:୦—

# ମାତୃବନ୍ଦନା

ରାଗ_ଜୟନ୍ତ

[ କଳାମାଣିକ ବାଣୀରେ ]

ନତ କେତେ ଦେଖଇଁ ମୁଁ ମାନବେ ଜଗତେ
ତୋହ୍ନ ପରି ମୋତେ କେହି ଦଶେ ନାହିଁ ସତେ ।
ନମେଁ ଚରଣେ ଗୋ ॥ ୧ ॥

ଅପାର ସାଗର ମାତ ! ବିଶାଳ ଭୂଧର
ତାହା ଠାରୁ ମହାନ ମା ମହିମା ତୋହର ।
ବନ୍ଦେ ପଦ୍ମରେ ଗୋ ॥ ୨ ॥

ସେନେହ ମମତା କ୍ଷମା ଦୟାର ଆଧାର
ଏକା ତୋତେ ଦେଖୁଛି ମା ସଂସାରରେ ସାର ।
ଭଜେ ପଦରେ ଗୋ ॥ ୩ ॥

କେତେ କଷ୍ଟ ସହୁଛୁ ମା ମୋ ଲାଗି ଜୀବନେ
ଦୁଃଖ ସୁଖ-ଅନୁଭବ କିଏ ଆଉ ଜାଣେ ?
ପୂଜେ ଶ୍ରୀ ପଦେ ଗୋ ॥ ୪ ॥

ଯେତେ ଯେତେ ଅପରାଧ କରେଁ ମୁଁ ଅଜ୍ଞାନେ
ପାଦେ ପଡ଼ି ଜଣାଉଛି ରଖ_ନାହିଁ ମନେ ।
ନମେଁ ଚରଣେ ଗୋ ॥ ୫ ॥

[ ○:୦:○ ]

# ମୋ ଜନ୍ମଭୂମି

(ରାଗ ଦେଶାଖି)

ଯେ ଦେଶେ ଜନମ ମୋର    ଯେ ଦେଶେ ମୋହର ଘର
ବହଇ ଯା'ର ସମୀର    ଶ୍ୱାସେ ପ୍ରଶ୍ୱାସେ;
ଯେଉଁ ଦେଶର ତପନ    କରଇ ଅନେକ ଦାନ
କରନ୍ତି ପ୍ରାଣ ଧାରଣ    ଯା' ଫଳ ଶସ୍ୟ,
ସଦା ପୁଣ୍ୟମୟ ଏ ସ୍ଥାନ;
ମୋ ଜନମଭୂମି ମୋର ମାତୃସମାନ ॥ ୧ ॥

ଯେ ଦେଶେ ଅଛନ୍ତି ମୋର    ପ୍ରିୟ ବନ୍ଧୁ ପରିବାର
ସ୍ନେହମୟୀ ମାତା ଆଉ    ସ୍ନେହର ତାତ;
ପ୍ରେମ-ଆନନ୍ଦ-ପସରା    ସହୋଦର ସହୋଦରା
ବୁହାଇ ସେନେହ-ଧାରା    ହରନ୍ତି ଚିତ୍ତ;
ନାହିଁ ଆଉ ଏସନ ସ୍ଥାନ;
ମୋ ଜନମଭୂମି ମୋତେ ରତ୍ନ ସମାନ । ୨ ।

ଯେ ଦେଶର ନଦୀ ଗିରି    ଜୀବଜନ୍ତୁ-ଉପକାରୀ
ଶୁଭ୍ର କଳେବର ଧରି    ଶୋଭା ବିକାଶେ,
ଅତୁଳ ତାରକା-ଶୋଭା    ନବ-ଜଳଧର-ଆଭା
ଚପଳା ଚପଳା-ବିଭା    ଖେଳେ ଆକାଶେ;
କାହିଁ ଆଉ ସ୍ଥାନ ଏସନ ?
ମୋ ଜନମଭୂମି ସତେ ସ୍ୱର୍ଗସମାନ । ୩ ।

ଯେଉଁ ଦେଶର ଅଞ୍ଚଳେ    ବହୁ ମଣି ବାସ କରେ
ମିଳେ ମୁକୁତା ସାଗରେ    ମୋ ହିତ ପାଇଁ;
ଯେଉଁ ଦେଶର କାନନ    ତରୁ ଲତା ପୁଷ୍ପମାନ
ସୁମଧୁର ପକ୍ଷୀ-ଗାନ    ମନ ମୋହଇ;

ଅଦ୍ୱିତୀୟ ବଣେ ଏ ସ୍ଥାନ;
ମୋ ଜନମଭୂମି ଅଟ୍ଟା ବୈକୁଣ୍ଠଧାମ ! । ୪ ।

ଯେ ଦେଶର ପାଣି ଭାତ ଖାଇ ଏ ଦେହ ଜୀବିତ
ଯା' ନାମେ ମୁଁ ପରିଚିତ ହୁଏଁ ଧରାରେ;
ଯା'ର ଗଉରବେ ସତେ ମାତି ଉଠେ ସୁଖ ଚିତ୍ତେ
ଯା'ର ଅପମାନ ମୋତେ ବିଷାଦେ ମାରେ;
ଜଗତେ ବିରଳ ଏ ସ୍ଥାନ;
ମୋ ଜନମଭୂମି ପିନା ସ୍ୱର୍ଗ ସମାନ । ୫ ।

---

## ଈଶ୍ୱର

( କାହ୍ନୁ ଅଛି ଏ ବପଦରାଗ୍ନ ଗ୍ରାସିଲା, ପ୍ରଭୁ )

ସବୁଠାରେ ଅଛନ୍ତି ସେ ଜଗତ ଈଶ୍ୱର
ଜଳ ସ୍ଥଳ ପରବତ ସକଳ ତାଙ୍କର—୧
ତାଙ୍କ ବୋଲ ମାନି ମେଘ ବରଷଇ ଜଳ
ତାଙ୍କ କଥା ମାନି ଗଛ ଧରେ ଫୁଲଫଳ—୨
ତାଙ୍କର ଆଦେଶ ମାନି କାନ୍ଦୁଅଛୁ ଖରା
ବହୁଛି ପବନ ସବୁ ସହୁଅଛି ଧରା—୩
ତାଙ୍କଠାରୁ ଜାତ ହୋଇ ଅଛୁ ଏ ସଂସାର
ତାଙ୍କର ସନ୍ତାନ ଆମ୍ଭେ ସକଳେ ଵିଶ୍ୱର—୪
ତାଙ୍କର ଦୟାରେ ସବୁ ତାଙ୍କ ବଳେ ବଳୀ
ନାହିଁ କେ ପାଳିବ ଆଉ ତାଙ୍କଠାରୁ ବଳି—୫
ତେଣୁ ଶିଶୁମାନେ ତାଙ୍କ କଥା ରଖ ମନେ
ସବୁ କଥା କରୁଥିବ ଅତି ସଯତନେ—୬

ଶ୍ରୀ ବନମାଳୀ ମିଶ୍ର କବିବନ୍ଧୁ କାବ୍ୟତୀର୍ଥ

# ବାଳ ବିନୋଦ ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ଗୋପଲୀଳା | ଶ୍ରୀ ଦାମୋଦର ମିଶ୍ର | ଠ ୦ ।୵ |
| ୨ | ପୁରାଣ କଥା ୧ମ ଭାଗ | ଜଣୈକ ଶିକ୍ଷକ | ଠ ୦ ୵ |
| ୩ | ମାର୍କଣ୍ଡେୟ | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. | ଠ ୦ । |
| ୪ | ପୁରାଣ କଥା ୨ୟ ଭାଗ | ଜଣୈକ ଶିକ୍ଷକ | ଠ ୦ ୵୰ |
| ୫ | ସୀତାଦେବୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ଠ ୦ । |
| ୬ | ଛୋଟ ରାମାୟଣ | ଶ୍ରୀ ଦାମୋଦର ମିଶ୍ର | ଠ ୦ ।୵ |
| ୭ | ଛୋଟ ମହାଭାରତ | ଶ୍ରୀ ଗୋଦାବରୀଶ ମହାପାତ୍ର | ଠ ୦ ୷୵ |
| ୮ | ବାଳବୀର ଅଭିମନ୍ୟୁ | ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ | ଠ ୦ ୷୦ |
| ୯ | ବିଶ୍ୱାମିତ୍ର | ଶ୍ରୀ ବାସୁଦେବ ମହାପାତ୍ର | ଠ । |
| ୧୦ | କର୍ଣ୍ଣ | | ଠ ୦ । |
| ୧୧ | ଓଡ଼ିଶାର ଇତିହାସ-କଥା | ଶ୍ରୀ ଉଦୟନାଥ ଷଡ଼ଙ୍ଗୀ | ଠ ୦ । |
| ୧୨ | ଧ୍ରୁବ | ଶ୍ରୀ ଦୟାନିଧି ମିଶ୍ର ବି. ଏ. ବି. ଏଲ୍. ଏଲ୍. ଟି. | ଠ ୦ ୷୰ |
| ୧୩ | ପୁରାଣକଥା-[illegible] | ଶ୍ରୀ ଗଙ୍ଗାଧର ମହାପାତ୍ର ଏଲ୍. ଟି | ଠ ୦ ୷ |
| ୧୪ | ଯୁଧିଷ୍ଠିର | ଶ୍ରୀ ନୀଳକଣ୍ଠ ଦାଶ | ଠ ୦ ୷ |
| ୧୫ | କୃଷ୍ଣା | ଶ୍ରୀ ଜଗନ୍ନାଥ ମହାପାତ୍ର | ଠ ।୦ |
| ୧୬ | ପ୍ରୀତିଗଳ୍ପ | ଶ୍ରୀ ପୀତାମ୍ବର କର ବି. ଏ. ଏଲ୍. ଟି. | ଠ ୦ ।୵ |
| ୧୭ | ଭରତ | ଶ୍ରୀ ନୀଳକଣ୍ଠ ଦାଶ | ଠ ୦ ।୵ |
| ୧୮ | ଅନସୂୟା | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ | ଠ ୷ |
| ୧୯ | ହରିଶ୍ଚନ୍ଦ୍ର | ଶ୍ରୀ ଦାମୋଦର ମିଶ୍ର | ଠ ୦ ।୵ |
| ୨୦ | ପୁରାଣକଥା ୩ୟ ଭାଗ | ଜଣୈକ ଶିକ୍ଷକ | ଠ ୦ ୷୵ |
| ୨୧ | ରଘୁ | ଶ୍ରୀ ଶିବପ୍ରସାଦ ଦାସ | ଠ ୦ । |
| ୨୨ | ହିତୋପଦେଶ-କଥା | | ଠ ୦ |
| ୨୩ | ବାଲ୍ମୀକି | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. | [ଯନ୍ତ୍ରସ୍ଥ] |

ପ୍ରାପ୍ତିସ୍ଥାନ:—

ଛାତ୍ରଭଣ୍ଡାର—ବ୍ରହ୍ମପୁର